# ରବିନାରାୟଣ ବ୍ରତ

## ଓ ପୁଷ ରବିବାର ବ୍ରତକଥା



ପ୍ରକାଶକ :-

**ସନ୍ନ୍ୟାସୀ ପୁସ୍ତକାଳୟ**

ଖାସ୍ପା ସାହି (ଜଗନ୍ନାଥ ମନ୍ଦିର ସାମ୍ନା)

ବ୍ରହ୍ମପୁର-୭୬୦୦୦୧ (ଗଞ୍ଜାମ)

ନୂତନ ସଂସ୍କରଣ

ମୂଲ୍ୟ—୫୦ ପଇସା

# ରବିନାରାୟଣ ବ୍ରତ କଥା

ନମୋ ଧର୍ମ ନିରଞ୍ଜନ ପାପତାପହାରି । ଅରକ୍ଷ ରକ୍ଷକ ସଦା ଆନନ୍ଦ ବିହାରୀ ।୧। ରବିନାରାୟଣ ବ୍ରତକଥା କହିବଇଁ । କରି ଦେବ ଅନୁଗ୍ରହ ପ୍ରାର୍ଥନା କରଇ । ବୈବସ୍ୱତ ମନୁରାଜା ଅଗସ୍ତି ମୁନିଙ୍କ । ଚରଣେ ପ୍ରଣମ କରି ପୁଚ୍ଛନ୍ତି ଏ ବାକ୍ୟ ।୨। ଆହେ ମୁନି ମହାପାପ କାହାକୁ କହନ୍ତି । କେଉଁ ପୁଣ୍ୟବ୍ରତ କଲେ ସେ ପାପୁ ତରନ୍ତି ।୩। ରାଜା ବାକ୍ୟେ କୁମ୍ଭସୁତ କହନ୍ତି ଏ ବାଣୀ । ଯାହା ପଚାରିଲ ତାହା ଶୁଣ ନୃପମଣି ।୪। ଗୋହତ୍ୟା ଯେ ବ୍ରହ୍ମହତ୍ୟା ନାରୀହତ୍ୟା ଜାଣ । ଜନନୀ ଗମନ ଆଉ ବୃଷଳୀ ହରଣ ।୫। ପଞ୍ଚ ମହାପାତକ ଏ ଆହେ ନରନାଥ । ଜନ୍ମଜନ୍ମାନ୍ତରେ ଏଥୁ ନୁହନ୍ତି ମୁକତ ଶିଶୁହତ୍ୟା ତହିଁ ସଙ୍ଗେ ସମାନ ଅଟଇ । କଲେ ଏହି ପାପ ଘୋର ନରକେ ପଡଇ ।୮। ପୁରୁଷକୁ ମାରଇ ଯେ ନାରୀ ପାପଚିତ୍ତେ । ଜନ୍ତୁ ମାରଇ ଯେ ବିନାଦୋଷେ ଏତେ ।୯। ଏହିପରି ଯେତେ ଯେତେ ପାତକ ଅଛଇ । କହିବା ତା କେତେ ହେଜ ଆହେ ନରସାଇଁ ।୧୦। ପାପମାନଙ୍କୁ ଯେ ଯମଦୂତେ ଘେନି ଯାନ୍ତି । ପକାଇ ନରକକୁଣ୍ଡେ ଦଣ୍ଡ ଦେଉଥାନ୍ତି ।୧୧। ଦାନ ଦେବା ଲୋକକୁ ଯେ ଭଙ୍ଗାଇ କହଇ । ଜନ୍ମେ ଜନ୍ମେ ଦରିଦ୍ର ସେ ଅବଶ୍ୟ ହୁଅଇ ।୧୨। ଦୈବସୁତମନୁ ଶୁଣି ଅଗସ୍ତି ବଚନ । ପୁଚ୍ଛନ୍ତି ଏ ପାପ କାହିଁ ହୋଇବ ମୋଚନ । ପ୍ରକାଶ କରି ତା କୋଳ ଭାଷନ୍ତି ଅଗସ୍ତି । କହୁଅଛୁ ଯାହା ଧୀରେ ଶୁଣ ନରପତି ।୧୪। ଦିନେ ସ୍ୱର୍ଗପୁରେ ସର୍ବ ଦେବତାଙ୍କ ଆଗେ । ଧାତା ଧର୍ମଶାସ୍ତ୍ର କହୁଥିଲେ ଅନୁରାଗେ । ପୁଚ୍ଛିଲେ ଦେବତା ମାନେ ଆହେ ସୁରମୁଖ । ମହାପାପ ଯାଏ କେଉଁ ବ୍ରତ କଲେ ଦେଖ ।୧୬। ତାହା ଶୁଣି ଧାତାଧର୍ମଶାସ୍ତ୍ର ଖୋଜିକରି । କହିଲେ ଏପରି କଥା ହରଷ ହୃଦର ଏକାଦଶୀ କଲେ ଜନେ ବୈକୁଣ୍ଠେ ବସନ୍ତି । ଷଡ଼ ଜୟନ୍ତୀରେ ଦେବ ଆସନ ଲଭନ୍ତି ।୧୮। ଦୁର୍ଗାଷ୍ଟମୀ ବ୍ରତ ଦେବ ଲୋକରେ ବସଇ ଚତୁର୍ଦ୍ଦଶୀ ବ୍ରତ ଶିବ ପଦକୁ ପାଅଇ ।୧୯। ଏହିପରି ବ୍ରତ ଖୋଜ

କହୁ ଚନ୍ଦ୍ର୦ଥା । ପୂର୍ଣ୍ଣି ତା ବସ୍ତ୍ବରେ ସକଳଦେବତା ଏକାଦଶୀ
ବ୍ରତ ନେଲେ ଦେବ ନାରାୟଣ । ଚତୁର୍ଦ୍ଦଶୀ ବ୍ରତକୁ ରଖିଲେ
ପଞ୍ଚାନନ ।୨୧। ଦୁର୍ଗାଷ୍ଟମୀ ଭଗବତୀ ରଖିଲେ ଆଦର । ସୂର୍ଯ୍ୟଦେବ
ଏହି ସବୁ କଥା ଦେଖିକରି । କହିଲେ ହେ ବୁଝିଆସେ ମାତାଙ୍କୁ
ପଚାରି । ନେବଇଁ ମୁଁ ବ୍ରତ ଯାହା କହିବ ବିଚାରି । ଏହା କହି
ଆଦିତ୍ୟ ସେଠାରୁ ଚଳିଗଲେ । ମାତାଙ୍କ ଚରଣେ ନମି ସବୁ
ଜଣାଇଲେ । ୨୪ । ତଦନ୍ତେ ପୁଚ୍ଛିଲେ ମାତା ବୋଲ କେଉଁ ବ୍ରତ ।
ନେବି ମୁଁ ବିଚାରି କହ ନ ରଖି ଗୁପତ ।୨୫। ଆଦିତ୍ୟ ବଚନ
ମାତା ବୋଲନ୍ତିରେ ବାପ । ରବିନାରାୟଣ ବ୍ରତେ ନ ରହଇ
ପାପ । ୨୭ । ଯେ ଯାହା ପାଞ୍ଚଇ ତାହା ଅବଶ୍ୟ ଫଳଇ, ବୁଝିବାବୁ
ଏହା କେବେଁ ଅନ୍ୟଥା ନୁହଇ । ମାତାଙ୍କ ବଚନେ ରବି କରି
ନମସ୍କାର । ବୋଲନ୍ତି ଗୋ ମାତ କହ ତାର ସମାଚାର କେଉଁ
ଦିନ ହୋଏ ବ୍ରତ କେ ବା କରିଥିଲେ ତହିଁରୁ ବା ତାହାର ଯେ କି
ଫଳ ହୋଇଲା ।୧୯। ଆଦିତ୍ୟବଚନେ ଶୁଣି ଜନନୀ କହନ୍ତି । ଶୁଣବାବୁ
କହୁଛି ମୁଁ ସେ ବ୍ରତର ଖ୍ୟାତି ।୦। ରବିବାରେ ଏକାଦଶୀ ହେଲେରେ
ନନ୍ଦନ । ରବିନାରାୟଣ ବ୍ରତ ହୁଅଇ ସେ ଦିନ । କଲେ ତାହା ପଞ୍ଚ
ମହାପାତକ ହରିତେ । ସବୁ ପାପ ଲୋପ ହୁଏ ବୁଝ ଧୀର ଚିତ୍ତେ ।୩ ।
ଦରିଦ୍ର ଲଭଇ ଧନ ଅପୁତ୍ରୀ ସନ୍ତାନ । ନାଶ ପାଏ ଉତ୍ପନପଣ୍ଡ ଯେ
ନୋହେ ଆନ ଏପରି ଯେ ଯାହା ବାଞ୍ଛେ ତାହା ସେ ଲଭଇ ।
ରବିନାରାୟଣ ବ୍ରତ ଫଳେ ମିଛ ନାହିଁ ।୩୦। ଶୁଣ ତାର ଇତିହାସ
କଥାରେ କୁମର । ଶୁଣିଲେ ସଂଶୟ ତୋର ହୋଇଯିବ ଦୂର ।୩୫।
ସଉରଷ୍ଟ୍ର ଦେଶେ ବିଦ୍ୟାବିନୋଦ ସାଧବ । ତାହାର ସମ୍ପତ୍ତି କେବା
ଗଣନା କରିବ ।୩୬। ହିରଧର ବୋଲି ତାର ଏକଇ କୁମର ।
ଶଙ୍କୋଚନା ନାମେ ଏକ ଦୁହିତା ଆବର ପୁତ୍ରବଧୂ ନାମ ଚନ୍ଦ୍ରକାନ୍ତି
ଯେ ଅଟଇ । ସକଳ ବଞ୍ଚନ୍ତି ନାନା ସୁଖ ଭୋଗ ପାଇ । ଭିକ୍ଷୁକ
ବ୍ରାହ୍ମଣେ ଆସି ନିତି ତା ଦୁଆରେ । ମାଗୁ ଭିକ୍ଷା ବୋହୁ ଝିଅ ଦୁହେଁ

ଦେଖି ଖରେ । ୩୯ । ବୃଦ୍ଧଳ ଆଞ୍ଚୁଳ ଆଣି ଦଅନ୍ତେ ଯେ ବୋହୂ ।
ବପ୍ର ବୋଲେ ତୋତେ ବହୁଭାଗ୍ୟ ଭୋଗ ହେଉ । ୪ । ସୁବର୍ଣ୍ଣ
ଅଞ୍ଚୁଳ ଆଣି ଦୁହିତା ଦଅନ୍ତେ । ତୋ କପାଳ ଭୁଞ୍ଜ ଏହା ବୋଲେ
ସେ ଭୁରତେ । ୪୧ । ଏହିପରି ନିତ ନିତ ବ୍ରାହ୍ମଣ କହନ୍ତେ ସାଧବ
ଦୁହିତା ବନେ ଜନନୀ ଅଗ୍ରତେ । ବୋଇଲା ତୋ ମାତା ବୋହୂ ବଣ୍ଟୁଳ
ଅଙ୍କୁଳ । ଦେଇ ବୋଲେ ବହୁଭାଗ୍ୟ ଭୋଗକର କାଳ । ୪୩ । ସୁବର୍ଣ୍ଣ
ଅଞ୍ଚୁଳ ତାଙ୍କୁ ଦଅନ୍ତେ ମୁଁ ନେଇ । ତୋ କପାଳ ଭୁଞ୍ଜ ବୋଲି
ବ୍ରାହ୍ମଣ କହଇ । ଏଥିର କାରଣ କିଛି ବୁଝି ନ ପାରଇ । ଏହା ଶୁଣି
ସାଧବାଣୀ ଆଉବନ ଯାଇଁ । ୪୫ । ଉଷା ଦେଲାବେଳେ ତାହା
ବୋଲନ୍ତେ ବ୍ରାହ୍ମଣ । ସାଧବାଣୀ ଶୁଣି ତାଙ୍କୁ ପୁଚ୍ଛେ ଏ ବଚନ । ୪୬ ।
ହେ ବ୍ରାହ୍ମଣ ଗୋସାଇଁ ବୋହୂକୁ ବୋଲ ଯାହା ଝିଅକୁ କମା ଇଅବା
ନ କହୁଛ ତାହା । ୪୭ । ଏଥିର କାରଣ କିସ କହଦେ ବୁଝାଇ
ବ୍ରାହ୍ମଣ ତା ବଚନରେ ହସ ହସ ହୋଇ । ୪୮ । ତୋ ଝିଅ ଜନମ
ହୋଇଥିଲା ଯେଉଁଠାରେ । ଦେଖ ତୁ ମୃତ୍ତିକା ଖୋଳି କ ଅଛି
ସେଠାରେ । ଏହା ବୋଲି ବିପ୍ର ଗଲେ ତହୁଁ ସାଧବାଣୀ । ଝିଅକୁ
ସଙ୍ଗରେ ଘେନି ଯାଇ ସେହିକ୍ଷଣି । ୫ । ଝିଅର ଜନମ ସ୍ଥାନ ମୃତ୍ତିକା
ଖୋଳନ୍ତେ । ଦେଖିଲେ ଯେ ସେ ସ୍ଥାନରେ ଅଛି ଏହିମତେ । ୫୧ ।
ଖଣ୍ଡେ ଭଙ୍ଗା ହାଣ୍ଡି ଛିଣ୍ଡା ପଦ୍ମର ମୂଠାଏ । ଛଟି ଭଙ୍ଗା ଫୋଲୁ
ଯେ ଅଛଇ ଥୋକାଏ ଏହା ଦେଖି ମାତା ଦୁହିତା ଯେ ଉଭୟ ଜଣେ
ସେ ନଦୀରେ ଭୋଜନ ଶୟନ କରଇଲେ । ୫୩ । ତହିଁ ଆଉବନ ଆସି
ସେ ବିପ୍ର ମିଳନ୍ତେ ସାଧବାଣୀ ଯାଇ ତାଙ୍କ ପାଦରେ ଭୁରତେ
ପ୍ରମାଣ କରି ସେ ସବୁ ବ୍ରାହ୍ମଣ ଆଗରେ । କହିଲା ଯା ଦେଖିଥିଲା
ଜନମ ସ୍ଥାନରେ । ତଦୂତ୍ତରୁ ପଚାରିଲେ ଏଥିର କାରଣ । କିସ
ତାହା ପ୍ରକାଶ୍ୟରେ ବୋଲହେ ବ୍ରାହ୍ମଣ । ସାଧବାଣୀ ବଚନରେ ସେ
ବିପ୍ର କହନ୍ତି । ସେଥିର ମରମ ଯେବେ ବୁଝିବୁ ଯୁବତୀ । ୧୭ । ତୋ
ଗ୍ରାମ ଅନାଥ ବ୍ରାହ୍ମଣୀକି ପୁଚ୍ଛିଲେ । କହିବ ସେ ସବୁକଥା ବୁଝା-
ଇଟି ଭଲେ । ଏହା କହି ସେ ବ୍ରାହ୍ମଣ ଗଲେ ଇଚ୍ଛା ସ୍ଥାନେ । ସାଧବାଣୀ

ସୁତା ସଙ୍ଗେ ତହୁଁ କରିଥିଲେ ।୫୯। କୁମ୍ଭାରୁଣୀ ପରି ପାଟଶାଢ଼ୀ ଅଳଙ୍କାର । ଯେତେବେଳେ ତା ନିକଟେ ମିଳିଲେ ସଞ୍ଜୁର ।୬୦। ଦେଖି ସାଧବାଣୀ କି ସେ ବହୁମାନ୍ୟ କଲା । କେଉଁଣେ ଆସିଅଛ ବୋଲି ତାକୁ ପଚାରିଲା ।୬୧। ସାଧବାଣୀ ବୋଲେ ତୁମ୍ଭ ସଙ୍ଗେ ମୁଁ ସଙ୍ଗାତ । ହେବାପାଇଁ ଆସିଅଛି ଏ ମିଛ ନୋହେ ତ ।୬୨। ଏହା ବୋଲି ପାଟଶାଢ଼ୀ ଅଳଙ୍କାର ଦେଲା । କୁମ୍ଭାରୁଣୀ ସଙ୍ଗରେ ସେ ସଙ୍ଗାତ ହୋଇଲା ।୬୩। ନିତି କୁମ୍ଭାରୁଣୀକୁ ସେ ସାଧବ ରମଣୀ ଦେଉଥାଇ ଭଲ ଭଲ ପଦାର୍ଥ ଯେ ଆଣି ।୬୪। ଦିନେ କୁମ୍ଭାରୁଣୀ ସାଧବାଣୀ ପୁଚ୍ଛଇ । ମୋଠାରେ କି କଥା କରି କହ ତା ବୁଝାଇ । ତା ବଚନେ ସାଧବାଣୀ ବୋଲେ ଗୋ ସଙ୍ଗାତ । ଏହା କହି ବୁଝାଇଲା ସକଳ ଚରିତ ।୬୫। ଝିଅର ଜନମ ସ୍ଥାନୁ ଯାହା ପାଇଥିଲା । ତାହା ସବୁ ତା ଆଗରେ ବଖାଣି କହିଲା । ଏଥିର କାରଣ କିସ ପଚାରୁ ଅଛଇ । ତୁମ୍ଭେ ଜାଣ କହିଛନ୍ତି ବ୍ରାହ୍ମଣ ଗୋସାଇଁ ସେ ଅମଙ୍ଗ କୁମ୍ଭାରୁଣୀ ସାଧବାଣୀ ଠାର । ପୁଣି ବୋଲେ ସଙ୍ଗାତ ଗୋ ଚିନ୍ତା କ୍ଷୁଣ୍ଣ କର ।୬୯। ବିଭାପରେ ଏଥିର କାରଣ ଜଣାଇବ । ମଧୁଶଯ୍ୟା ଦିନ ଏକା ଜଗିମୁଁ ରହିବ ।୭୦। ଏହା ତହୁଁ ସାଧବାଣୀ ସେଇବାଣୀ ଶୁଣି । ଆପଣା ଘରକୁ ଗଲା ଯେନାଇ ଦୂଲଣୀ ।୭୧। କରିଦିନ ଅନ୍ତେ ଶୁଭ ଲଗ୍ନ ଦେଖିକରି । ଉତ୍ତମ ସୁପାତ୍ର କୁଳଶୀଳ ଦେଖିକରି ବିବାହ କରାଇ ଦୁହିତାର ସାଧବାଣୀ । ଅମଙ୍ଗକ କହନ୍ତେ ସେ ଶୁଣି ତା ସେକ୍ଷଣି ।୭୩। ଯାଇ ସ୍ନାନ କରି ହୋଇଶଉଚ ହସ୍ତରେ । ପୂଜାପେଢ଼ି ଫିଟାଇ ସେ ବସିଣ ମନରେ ।୭୪। ରବିନାରାୟଣ ବ୍ରତପୂଜା ଦୁର୍ବାକ୍ଷତ । ରଖିଥିଲା ତହୁଁ ବାନ୍ଧି ଯେନଲା ଭୂଷିତ ଅଞ୍ଚଳାନ୍ତ ବାସ ପିନ୍ଧି ସତ୍ତ୍ୱରେ ଅଇଲା । ସାଧବାଣୀପୁରେ ପଶି ଗୁପତେ ରହିଲା ମଧୁଶଯ୍ୟା ହୁଅନ୍ତେ ସେ ବର କନ୍ୟାଙ୍କର ଅମଙ୍ଗ ବସିଲା ମାଡି ଯାଇ ସେ ଦୁଆର ।୭୭। ନିଶୀଥର୍ଦ୍ଧ ପରେ ଆସି ଯମଦୂତମାନେ ପରବେଶ ହୋଇଲେ ସେ ସାଧବସଦନେ । ବର କନ୍ୟାଙ୍କର ମଧୁଶଯ୍ୟା ପୁରଦ୍ୱାରେ । ପ୍ରବେଶ ହୁଅନ୍ତେ ଯାଇ ଦେଖିଲେ ନେତ୍ରରେ

ସତସ୍ତ ଆଦିତ୍ୟ ତେଜ ଧରି ସେ ଅନନ୍ତ । ବସିଅଛନ୍ତି ସେ ଗୃହର ଦୁଆର ଆବୋରି ।୮°। ତା ତେଜରେ ନିକଟକୁ ସେ ଯାଇଁ ନପାରି । ବୋଲନ୍ତି ଅନନ୍ତ ଯାଅ ଦ୍ୱାର ଛାଡ଼ିକରି । ସାଧବ ଜୁଆଇଁ ପରମାୟୁ ଶେଷଆଜ । ଚିତ୍ରଗୁପ୍ତ କହିଛନ୍ତି ଦେଖି ତାଙ୍କ ପାଞ୍ଜି । ନେବୁ ତାକୁ ଆମ୍ଭେମାନେ ଆସିଛୁ ତର୍କିକ ତାହା ଶୁଣି କୁମ୍ଭାରୁଣୀ କହଇ ବାଣୀକ । ନ ଛାଡ଼ିବି ଦୁଆର ମୁଁ କୁମ୍ଭ ବଳଥିଲେ । ଯେନଯାଅ ଇଚ୍ଛାକେତି ଲେଇକ ନୋହିଲେ । ଏହାଶୁଣି ଯମଦୂତେ ସତ୍ୱରେ ଫେରିଲେ । ଜଳୁପତି ଆଗେ ଯାଇ ସବୁ ଜଣାଇଲେ । ଶୁଣି ତା ଶମନ ଚଡ଼ି ମଇଁଷୀପିଠିରେ । ପରବେଶହେଲେ ଯାଇ ସାଧବ ମନ୍ଦିରେ । ମଧ୍ୟସେଯା ପୂରଦ୍ୱାରେ ଅନନ୍ତକ ଦେଖି । ବୋଲନ୍ତି ଶମନ ବାଣୀ ତାଙ୍କୁ ଆଣୋ ଡ଼ାକ । ଛାଡ଼ ତୁ ସାଧବ ଜୁଆଇଁ କ ନେବୁଁ ଆମ୍ଭେ। ପରମାୟୁ ତ ରି ଶେଷ ହୋଇଅଛି ଏବେ । କୁମ୍ଭାରୁଣୀ ଶୁଣିବୋଲେ ଆହେ ଜଳୁନାଥ ଅନନ୍ତ ମୋ ନାମ କପାଁ ଦେଇଛ କହତ ମୋତେ କେତେ ସେବା କରିଅଛି ସାଧବାଣୀ । କପରି ମୁଁ ତାହାକୁ ଛାଡ଼ିବି କହପୁଣି ଯମ ବୋଲେ ଯେବେ ତାକୁ ନ ଛାଡ଼ିବୁ ତୁହି । ତୋ ସୁତ ପତିଙ୍କି ଆଜ ଯାଉଅଛୁ ନେଇ । ଏହା ବୋଲି ଯମ ତହୁଁ ଫେରି ବେଗେ ଗଲେ । କୁମ୍ଭାରୁଣୀ ସାତପୁତ ପତିଙ୍କି ସେ ନେଲେ ନିଶି ଶେଷ ସାଧବାଣୀ ଆସୁଁ ତାକୁ ସ୍ୱହିଁ । ଅନନ୍ତ କହିଲା ସବୁ କଥାକୁ ବୁଝାଇ ବୋଇଲା ତୁମର ଝିଅ ଏ ନିଶିରେ ଜାଣ । ହୋଇଥାନ୍ତା ରଣ୍ଡ ଏଥେ ସନ୍ଦେହ ନମଣ । ଚଣ୍ଡାଳ ଗୃହରେ ରହି ପିନ୍ଧି ଭଙ୍ଗାଶଙ୍ଖା । ପଦଗ୍ଧ ଖପର ଧରି ବୁଲୁଥାନ୍ତା ଏକା । ଏବେ ସବୁ ବିପତ୍ତିରୁ ହୋଇଗଲା ପାର । ଆସ ଆସ ଦେଖିବ ଯେ ବିପତ୍ତି ମୋହର । ଏହା କହି ସାଧବାଣୀ ସଙ୍ଗେ ସେ ଅନନ୍ତ । ଆପଣା ନିହରେଣୀବ ଯାଇଁମିଳି କରି ଦେଖିଲା ଯେ ସାତପୁତ ଗୃହସ୍ଥ ତାହାର । ମରି ଶୋଇଛନ୍ତି ପ୍ରାଣ ନାହିଁତ କାହାର । ସାଧବାଣୀ ତାହାଦେଖି ନିବେଦ ହୋଇଲା ଅନନ୍ତ ସେ ଦୂର୍ବାକ୍ଷତ ଜଳରେ ଧୋଇଲା ସେହିଜଳ ସିଞ୍ଚୁ ସବେ ଜୀବନ

ପାଇଲେ । ଆନନ୍ଦରେ ଉଠି ଯେଝାଁକାଫେ ଚଳଚଳେ ଦେଖିଛାତା ସାଧବାଣୀ ସେ ଅମଷ୍ଟ ପାଦେ । ପ୍ରଣାମ କରି ସେ ତାକୁ ପୁଚ୍ଛଇ ଆନନ୍ଦେ । କହଗୋ ସଙ୍ଗାତ ଏହା କାହିଁ ହୋଇଲା । ଏତେ ଆଧି ତୁମ୍ଭଙ୍କୁ କେ ଅବା ଦେଇଲେ ତୁମ୍ଭାରୁଣୀ ଶୁଣି ସାଧବାଣୀକି କହଇ ଉବନାବପୂଣ ବ୍ରତଫଳ ଏ ଅଟଇ । ସାଧବାଣୀ ବୋଲେ କହ ସେ ବ୍ରତ ବିଧାନ । କରିବି ମୁଁ ଏହା ଶୁଣି ହୋଇ ତୋଷମନ । ଅମଷ୍ଟ ବୋଲଇ ଭାଦ୍ରବାରେ ଏକାଦଶୀ ପଡ଼ିଲେ ଏ ବ୍ରତହୋଏ ଜାଣ ଗୋ ବିଶେଷି । ପ୍ରଭାତରୁ ଉଠି ସ୍ନାନନିତ୍ୟକର୍ମ ସାରି । ପୂଜା ଦ୍ରବ୍ୟ ସବୁ ସଜାଡ଼ିବା ଦେଖିକରି । ତ୍ରିଣାସ୍ତ ପ୍ରହର ବେଳ ହୁଅନ୍ତେ ଚଳିବ । ଦେବାଳୟେ କି ତୁଳସୀ ମୂଳରେ ପୂଜିବ ଧର୍ମନିରଞ୍ଜନଙ୍କର ଏ ବ୍ରତ ଅଟଇ । ସାତଫଳ ସାତ ଫୁଲରେ ପୂଜିବ ତତେଇ । ସାତ ଗୋଟି ମଣ୍ଡାକରି ନଇବେଦ୍ୟ ଦେବ । ନାନାବିଧ ଫଳ ମୂଳ ଟଙ୍କିରେ ବାଢ଼ିବ । ସାତନଡ଼ା ଦୁବ ସାତ ଅକ୍ଷତ ସହିତେ । ସମର୍ପିବ ଧର୍ମ ନିରଞ୍ଜନଙ୍କୁ ସୂତେଓ ସାତଖିଅ ସୂତାକରି ବ୍ରତସଜାଡ଼ିବ । ଧର୍ମଙ୍କୁ ସୁମରି ସାତଗଣ୍ଠି ପକାଇବ ପୂଜାସରି ସେ ବ୍ରତକୁ ହସ୍ତରେ ବାନ୍ଧିବ ଦେବତା ମୂର୍ତ୍ତି ପାଖେ ତାକୁ ରଖିଥିବ । ବ୍ରତ ଉପବାସ କରିପୂଜା ନଇବେଦ୍ୟ । ଖାଇସେ ଦିନ ବଞ୍ଚିବ ନ ଭୁଞ୍ଜି ବିଷାଦ ତହିଁପରଦିନ ପ୍ରଭାତରୁ ସ୍ନାନ କରି । ଅର୍ଘ୍ୟଦେବ ଆଦିତ୍ୟଙ୍କୁ ଭକତରେ ପୂଜି । ତହିଁପରେ ଇଷ୍ଟବନ୍ଧୁ ମାନଙ୍କ ସଙ୍ଗରେ । କରିବା ପାରଣା ଆନନ୍ଦିତ ମାନସରେ । ଏହିପରି ଯେ କରଇ ଭକତ ଚିତ୍ତରେ । ଉବନାଶ୍ବପୂର୍ଣ ବ୍ରତ ଅତି ଆନନ୍ଦରେ ଯେ ଯାହା ବାଞ୍ଛାଇ ତାହା ହୁଅଇ ପୂରଣ । ଏଥିରେ ସନ୍ଦେହ କିଛି ମନରେ ନ ମଣ ଶୁଣି ସାଧବାଣୀ ଯାଇ ସେ ବ୍ରତକୁ କଲା । ଦିନୁଦିନ ତାହାର ଯେ ସମ୍ପଦ ବଢ଼ିଲା । କାଳକ୍ରମେ ଅନେକ ସୁଖ ଭୁଞ୍ଜି ମରଣାନ୍ତେ । ବଇକୁଣ୍ଠେ ବସିଲା ସେ ଅତି ଆନନ୍ଦେ । ଆଦିତ୍ୟ ମାତାଙ୍କଠାରୁ ଏହା ଶୁଣି ଗଲେ । ଉବନାଶ୍ବପୂର୍ଣ ବ୍ରତ ଆରମ୍ଭ ବୋଇଲେ । ଆହେ ଜନେ ଧର୍ମନିରଞ୍ଜନ ବ୍ରତ ଏହି ।

କଲେ ବାଞ୍ଛା ପୂର୍ଣ୍ଣ ହୋଏ ସନ୍ଦେହ ଯେ ନାହିଁ । କର ସର୍ବେ ଭକ୍ତ ଚିତ୍ତରେ ଏହିବ୍ରତ । ଅବଶ୍ୟ ହୋଇବ ଯେସ୍ଥା ବାଞ୍ଛା ପଦ୍ମପତ ଅତ୍ତ ପବଣ ଯେ ରବନାଗପୂଣ ବ୍ରତ । କଥା ଏହି ଶୁଣି ଜନେ ହୁଅ ହେ ପବନ ।

ଇତ ଶ୍ରୀ ରବନାଗପୂଣ ବ୍ରତକଥା ସମାପ୍ତ

— ୫୦୫( —

## ପୁଷ ରବିବାର ବ୍ରତ କଥା

ଧର୍ମନରଞ୍ଜନନ୍ଦବ ଚରଣେ ନମଇ । ପୁଷ ରବବାରକଥା କହି ଆରମ୍ଭଇ । ଶୁଣ ଜନେ ମରହଟା ଦେଶର ସ୍ୱଜନ । ସୁଗତ ନାମରେ ଥିଲେ ଅତ ଗୁଣବାନ ସୁଶୀଳା ନାମରେ ଥିଲେ ତାଙ୍କ ମହାଦେଇ । ପତବ୍ରତା ଧର୍ମଶୀଳା ତାଙ୍କ ଚବ ସେହି । ସ୍ୱଜପୁହ ସମାନରେ ପ୍ରଜାଙ୍କୁ ପାଉନ୍ତି । ଦେବ ଗୁରୁ ବ୍ରାହ୍ମଣରେ ଭକତ କରନ୍ତି ସେହି ପୁଣ୍ୟେ ସ୍ୱଜାଙ୍କର ଏକଇ କୁମର । ହୋଇଲା ଯେ ରୂପ ଗୁଣେକ ହିଁ ପଟାନ୍ତର ସୁଦର ପଣରେ କାମ ତା ଆଗରେ ଗ୍ଲାନ ବଳୁବନ ପାଠପଚି ହେଲା ରଣାକର । ସେ ପୁହର ନାମ ରତ୍ନାକର ଯେ ଅଟଇ । ସକଳଗୁଣରେ ତାକୁସମାନଟି ସେହି । ସେ ପୁହର ଯଉବନ ସମ୍ପୂ ହୁଅନ୍ତେ । ମହିମା କରଇବ୍ରଲ ସଙ୍ଗତଙ୍କ ସଙ୍ଗତେ ବନେ ସଙ୍ଗମାନଙ୍କର ସଙ୍ଗେ ରତ୍ନାକର । ବସିଅଛି ସେହିପଥେ ଆଗରେ ତାହାର ଏକ ମହାଜନ ପୁହ ବଣ ହୋଇ କର । କନ୍ୟା ସେନ ପିବାରୁ ତା ଅନାଇ ବସ୍ରର । ଆପଣା ଗୃହକୁ ଯାଇ ସେ ସ୍ୱଜା ନନ୍ଦନ । ଜନମ ନକଟେ କହେ ବରସେ ଏସନ । ଆଗୋମାତ ମୋ ସଙ୍ଗରେ ଯେତେ ସଙ୍ଗୀଛନ୍ତି । ସକଳେ ହୋଇଲେ ବଣ୍ଣ ଯେତା ଜାତ କାହିଁ ପାଇଁ ମୋତେ ବଣ ନ କର ଗୋ ମାତ । ଏହା କହି ରତ୍ନାକର ହୁଅନ୍ତେ ଦୁଃଖିତ । ପୁହର ବଚନ ଶୁଣି ସୁଶୀଳା କହଇ । କରାଇବ ବଣ୍ଣ ତୋତେ ନ ଭଲରେ ଭୁହି । ଏହା କହି ମହାଦେଇ ନୃପପାଶେ ଯାଇ ବୋଲଇ ହେ ସ୍ୱଜା ଶୁଣ ମ୍ୱାହା ମୁଁ କହଇ । ହୋଇଲା ନନ୍ଦନ ଯୁବା ତାହାକୁ

ବିବାହ । ନ କର କନ୍ୟାର ଏଥେ ମହିମ କି କହ । ରାଣୀ ବଚନରେ
ରାଜା ଚମକ ପଡ଼ିଲେ । ମୋ ମନେ ତା ନାହିଁ ବୋଲି ରାଣୀକି କହିଲେ ।
ଆଉ କିଛି ନ ବୋଲ ଗୋ ଅଳପ ବୟସରେ । କରାଇବି ବିଭା କନ୍ୟା
ଖୋଜାଇ ଝଟରେ । ରାଣୀ ତାହା ଶୁଣି ଅନ୍ତଃପୁରକୁ ଚଳିଲେ । ରାଜା
ତହୁଁ ଏକ ବ୍ରାହ୍ମଣକୁ ଡ଼କାଇଲେ ନିକଟେ ବସାଇ ତାଙ୍କୁ ବୋଲେ
ହେ ଗୋସାଇଁ । କନ୍ୟା ଏକ ବୁଝ ଆମ୍ଭ ଯୁବରାଜ ପାଇଁ । ରାଜା
ଯତନରେ ବିପ୍ର ହେଉ ବେଳ କହି । ରାଜପଣ୍ଡରୁଶ ହେନ ଗଲେ
ବେଗ ହୋଇ । ଅନେକ ସ୍ଥାନରେ ବୁଲି କର୍ଣ୍ଣାଟ ଦେଶରେ ।
ମିଳିଲେ ସେ ଧନବନ୍ତ ସାଧବ ନଗରେ ବାଳବନ୍ତ ନାମ ଥିଲା
ସାଧବର ଝିଅ । ସବୁ ସୁଲକ୍ଷଣ ରୂପ ଗୁଣରେ ଅବଧ । ତାହା ଜାଣି
ବିପ୍ର ତାଙ୍କୁ ବୁଝାଇ କହିଲେ ଆମ୍ଭ ରାଜାଙ୍କର ପୁତ୍ର ଅଛନ୍ତି
ବୋଇଲେ । ସେ ରାଜା ପୁତ୍ରଙ୍କୁ ତୁମ୍ଭେ କନ୍ୟାଦାନ କର । ବୁଝିଲେ
କାହାକୁ ଦେବ ନାହିଁ ଅସୁନ୍ଦର । ଶୁଣି ତା ସାଧବ ଯତ୍ନ ସନମତ
ହେଲା । ଗଣାପୋଛା କରି ବିପ୍ର ସେଠାରୁ ଚଳିଲେ ସୁଖେ ନୃପତି
ପାଶେ ମିଳି ସେ ବ୍ରାହ୍ମଣ । ସବୁକଥା ତାଙ୍କ ଆଗେ କଲେକ ବଖାଣ
ଶୁଣି ତାହା ନରପତି ଆନନ୍ଦ ହୋଇଲେ । ଗହଣା ଲଗାଇ ପୁତ୍ର
ଘେନି ଚଳିଗଲେ କେତେଦିନ ଯାଇ ମିଳି କର୍ଣ୍ଣାଟ ଦେଶରେ ।
ପରବେଶ ହୁଅନ୍ତେ ସେ ସାଧବ ନଗରେ । ଦେଖି ତାହା ଧନବନ୍ତ
ସାଧବ ତୋଷରେ । ସେମାନଙ୍କୁ ରଖାଇଲେ ଉତ୍ତମ ବାସରେ ଶୁଭ
ଯୋଗ ଲଗ୍ନ ଦେଖି କଲେ କନ୍ୟାଦାନ । ଯାହା ଯଉତୁକ ଦେଲେ ନୃପର
ଗଣନ । ଝିଅସାରି ସବେ ତହିଁ ନେସ ନାରୀ ବଞ୍ଚିଲେ । ପରଦିନ ବର
କନ୍ୟା ଘେନି ଚଳିଅଛିଲେ । ସାଧବ ଅନେକ ଧନ ଭାର ଶକଟରେ ।
ଦେଲେ ଝିଅ ସଙ୍ଗେ ଅତି ଆନନ୍ଦ ମନରେ ରାଜପୁର ନିକଟରୁ କିଛି
ଦୂରେ ଥାଇ । ହାଦୋଳରୁ ସାଧବର ଝିଅ ଦେଖେ ଚାହିଁ ବର
ଅନ୍ଧ ହୋଇବାକୁ ଅଳପ ଅଛଇ । ଏହାଦେଖି ସାଧବର ଝିଅ
ବିସ୍ମରଇ ମୋ ବାପ ସାଧବ ଦେଇଅଛି ଯେତେ ଭାର । କଏ ତା
ଦେଖିବ ଅବା ହୋଇଲେ ଅନ୍ଧାର । ଏହା ଭାବି ଆଦରୀଙ୍କୁ ସାଧବ

ଦୁହିତା । ବହୁ ବନସ୍ତରେ ବୋଲେ ହେ ଦେବ ସବିତା । କୃପା କରି ଝଟ୍ଟୁ ବେଳ ଫିରିଗଲେ କର । ଯେଉଁ ପରି ଅତିଶୀଘ୍ର ନୋହିବ ଅନ୍ଧାର । ଆମ୍ଭେମାନେ ସର୍ବେ ଯାଇ ରାଜା ଭୁବନରେ । ଚରବେଶ ହୋଇବୁଟି ଯଥା ଦିବସରେ ନିଶିପରେ ତୁମ୍ଭେ ଅସ୍ତାଚଳେ ପଚ୍ଛେ ମିବ । ଏ ମୋର ବନସ୍ତ ଦେନ ଆହେ ସୂର୍ଯ୍ୟଦେବ । ସାଧବଦୁହିତା । ବନସ୍ତରେ ଦିନକର ବିଳମ୍ବ ନ କରନ୍ତେ ହୋଇଲେ ଉତ୍ତର । ରଜା ସଦନରେ ସର୍ବେ ପ୍ରବେଶ ହୋଇଲେ ନିଶିପରେ ଦିନପ୍ରାନ୍ତ ଅସ୍ତାଚଳେ ଗଲେ । ସେ ଦିନ ସୂର୍ଯ୍ୟଙ୍କ ମାତା ପୂଜକୁ ଅନାଇ । ଡାକଲେ ହଲନ୍ତୁ ସୂତ ନଇଲ କପାଇଁ କାର୍ତ୍ତିକ ବିଳମ୍ବ ହେଲା ମନରେ ବ୍ୟୁଶ । ବାଟେ ଠିଆ ହୋଇଛନ୍ତି ପଥ ବୃଦ୍ଧିକରି ଏକାଳେ ରବି ଯାଇ ପ୍ରବେଶ ହୁଅନ୍ତେ । ତାଙ୍କୁ କୋଳେ ଧରି ମାତା ବୋଇଲେ ଏମନ୍ତେ । ଆରେ ବାବୁ ଅଜ ତୋର କାର୍ତ୍ତିକ ଉତ୍ତର । ହୋଇଲା କେ ଅବା ପଥ ଜଗିଲା ତୋହର । ଯେ କେଉଁ ଆଜ ବିଳମ୍ବ କଲା ଯେହି ତୋର । ମୋ ଅଭିଶାପରେ କୁଷ୍ଠ ହେଉ ଅଙ୍ଗେ ତାର ଚଳନ୍ତ କୁଷ୍ଠେ ତା ହାତ ଗୋଡ଼ ଛିଡ଼ି ଯାଉ । ତୋ ପଥ ବିଳମ୍ବ କରିବ ର ଫଳ ପାଉ । ଏହା ଶୁଣି ଆଦିତ୍ୟ ଯେ ବିରସ ହୋଇଲେ । କି କଲ କି କଲ ମାତା ବୋଲି ସେ ବୋଇଲେ । କେହି ମୋର ପଥ ବନ୍ଦ କରି ନାହିଁ ଶୁଣ । ଯହିଁକି ବିଳମ୍ବ ହେଲା ବୁଝିତା କାରଣ ସାଧବର ଝିଅ ଅଜ ଶେଷ ବୋଝ ଘର । ଗହଣା ଲଗାଇ ଯାଉଥିଲା ସ୍ୱମିଘର । ତାହା ଦେଖୁ ଦେଖୁ ମୋର ବିଳମ୍ବ ହୋଇଲା । ଏଥିରେ ବା କେଉଁ ଜଣ ଦୋଷକାରୀ ହେଲା । ଅକାରଣେ ତାକୁ ଅଭିଶାପ ଦେଲ ମାତ । କହ ଏବେ କପରି ସେ ହୋଇବ ମୁକତ । ଆଦିତ୍ୟ ବଚନେ ତାଙ୍କ ଜନନୀ କହନ୍ତି, ପୁଷରବିବାର କଲେ ହେବ ସେ ମୁକତ । ପୁଷମାସ ରବିବାର ଦିନ ପ୍ରଭାତରୁ । ରବି ଉଦେ ନୋହୁ ବେଗେ ଉଠିବ ସେଯରୁ । ବିଧାନରେ ଯାଇ ସ୍ନାନ କରି ଆସି ବେଗେ । ତୁଳସୀ ମୂଳରେ ଲିପି ଗୋମୟେ ସବୁରେ । ତହିଁରେ

ମଣ୍ଡଳ ଲିଖି ରବିଙ୍କି ସ୍ଥାପିବ । ନାନାବର୍ଣ୍ଣ ଫୁଲେ ସେ ସ୍ଥାନକୁ ମଣ୍ଡାଇବ । ବେଦମନ୍ତ୍ର ଜାଣିଥିବା ବ୍ରାହ୍ମଣେ ଡକାଇ । ସୂର୍ଯ୍ୟପୂଜା କରାଇବ । ନାନା ଭୋଗ ଦେଇ । ଶର୍କରା ମିଶ୍ରିତ ଖଜା ପକ୍ୱ ରମ୍ଭାଫଳ । ଆରିଷା ଦଧି ଗୋଟିକା ଆଦି ନାରିକେଳ । ଏ ବିଧିରେ ନାନା ଉପହାରେ ପୂଜା କଲେ । ଅବଶ୍ୟ ହୋଇବ ମଙ୍ଗଳଟି ଜାଣ ଲଭିଲେ ଏହା କହି ମାତା ଧ୍ରୁବେ ରହିଲେ ସନ୍ତୋଷେ । ଶୁଣ ଜନେ ଏଥୁଅନ୍ତେ କେତେକ ଦିବସେ ସାଧବ ଝିଅର ଅଙ୍ଗେ କୁଷ୍ଠରୋଗ ହେଲା । ଦିନୁ ଦିନୁ ତାହାକୁ ଅବଶ କରିଦେଲା । ରଜା ରାଣୀ ତାହା ଦେଖି ଦୁଃଖିତ ହୋଇଲେ । ଗୁରୁ ବ୍ରାହ୍ମଣଙ୍କୁ ଡାକ ସବୁ ଜଣାଇଲେ । ସେମାନେ ସକଳେ ଶୁଣି କହିଲେ ବତ୍ସର । ଯେବେ ପୂଷ ରବିବାର ବ୍ରତ କରିପାରି । ତେବେ ଜାଣ ତାହାର ଏ ରୋଗ ଛାଡ଼ିଯିବ । ଆଉ ଯା ବାଞ୍ଛିବ ତାହା ଅବଶ୍ୟ ଫଳିବ । ଏହା ବୋଲି ସେ ବ୍ରତର ବିଧି ଜଣାଇଲେ । ଶୁଣି ତାହା ରଜା ରାଣୀ ବିଧିକୁ କହିଲେ । ସାଧବର ଝିଅ ଶୁଣି ଭକତି ଚିତ୍ତରେ । କଲା ପୂଷ ରବିବାର ବ୍ରତକୁ ବିଧିରେ । ତହୁଁ ଦିନୁ ଦିନୁ ତାର ବ୍ୟାଧି କେଣେ ଗଲା । ପୁତ୍ର ଧନ ଦ୍ରବ୍ୟ ସୁଖେ ସୁହାଗୀ ହୋଇଲା । ଆହେ ଜନେ ପୂଷ ରବିବାର ଯେ କରଇ । ତାହାର ସକଳ ବାଞ୍ଛା ଅବଶ୍ୟ ଫଳଇ । ସୂର୍ଯ୍ୟଦେବ ପୂଜାବ୍ରତ ଏମନ୍ତି ଜନେ ଶୁଣ । ଭକତିରେ କଲେ ହୋଏ ବାଞ୍ଛିତ ପୂରଣ ।

—୧୦ଃ—

ସ ମା ପ୍ତ

ମୁଦ୍ରାକର—ସନ୍ନ୍ୟାସୀ ପ୍ରେସ୍, ବ୍ରହ୍ମପୁର—୯

